# ମହାତ୍ମା ଗାନ୍ଧିଙ୍କ କଥା ।



ଭାଇମାନେ,

ଦିନକୁ ଦିନ ଆମ୍ଭମାନଙ୍କର ଅବସ୍ଥା ଖରାପ ହେଉଅଛି । 'ଦାନା ଓ କନା' ଏହି ଦୁଇ ପଦରେ ଆମ୍ଭେମାନେ ବିଶେଷ ହଇରାଣ ହେଉଅଛୁ । କଣ କଲେ ଆମ୍ଭମାନଙ୍କର ଭଲ ହେବ, ଆମ୍ଭେମାନେ ସୁଖରେ ମୁଠିଏ ଖାଇ ଖଣ୍ଡିଏ ପିନ୍ଧି ରହିବା, ସେଥିରେ ମନଯୋଗ ଦିଅନ୍ତୁ ।

ଆମ୍ଭମାନଙ୍କ ଦେଶରେ କ୍ରମେ ପାପମାତ୍ରା ବଢ଼ୁଛି । ବେଳକୁ ବେଳ ଆମ୍ଭେମାନେ ବାରରକମର ମିଛ, ବାରରକମର ଫିସାଦ ଶିଖୁଛୁ । ଆମ୍ଭେମାନେ ନିଜଧର୍ମରେ ବିଶ୍ୱାସ ହରାଉ ଅଛୁ । ପେଟ ବିକଳରେ କିଏ କେତେ ପାପ କରୁଛି ତାର ସୀମା ନାହିଁ । ତେବେବି ପେଟ ପୁରୁ ନାହିଁ । ସବୁ ଆଡୁ ନଅଣ୍ଟିଅ ପଡୁଛି । ଯେତେଦଣ୍ଡା, ଯେତେମଶାଣୀ, ଯେତେଗୋଚର, ଯେତେପଡିଆ, ଛଡିଲେବି ଚାଉଳ ଭାଉ ବଢୁଛି, କମିବାକୁ ନାହିଁ । "ଧର୍ମରୁ ଜୟ, ପାପରୁ କ୍ଷୟ" । ପାପଭାର ବେଶିହେଲଣି । ତେଣୁ ଏ ଦୁର୍ଗତି । କଣ କଲେ ଏ ପାପ ଦୂର ହେବ, ଏ ଦୁର୍ଦ୍ଦଶା ଫେରିବ, ସେଥିଲାଗି ଟିକିଏ ଭାବନ୍ତୁ ।

ଆମ୍ଭମାନଙ୍କ ଜନ୍ମଭୂମି ଭାରତବର୍ଷର ଗୁଜରାଟ ଅଞ୍ଚଳରେ ଜଣେ ମାହାତ୍ମା ଜନ୍ମ ହୋଇଅଛନ୍ତି । ତାହାଙ୍କର ନାମ "ମୋହନ ଦାସ କରମ ଚାନ୍ଦ ଗାନ୍ଧି" ସେ ମହାତ୍ମା ଆମ୍ଭମାନଙ୍କର ଦୁର୍ଦ୍ଦଶା ଘୁଞ୍ଚାଇବା ଲାଗି ସବୁବେଳେ ବ୍ୟସ୍ତ । ସେ ଆମ୍ଭମାନଙ୍କ ହିତ ପାଇଁ ପ୍ରାଣଦେବାକୁ ରାଜି ଅଛନ୍ତି । ସେ ପରମ ଧାର୍ମିକ ଓ ପଣ୍ଡିତ । ତାଙ୍କ କଥାରେ ଚାଲିଲେ ଆମ୍ଭମାନଙ୍କର ଧର୍ମରକ୍ଷା ହେବ ଓ ଅମ୍ଭେମାନେ ସୁଖରେ ଖାଇ ପିନ୍ଧି ରହିବା । ସେ ମହାତ୍ମା ଆମ୍ଭମାନଙ୍କର ହିତ ପାଇଁ କେତେଗୋଟି କଥା କହି ଅଛନ୍ତି । ଅମ୍ଭେମାନେ ତାହା ପାଳନ କଲେ ଆମ୍ଭମାନଙ୍କର ଦୁଃଖ ରହିବ ନାହିଁ, ପାପ ଓ ଅଶାନ୍ତି ଶୀଘ୍ର ଦୂର ହେବ ।

---

୧ମ କଥା :—

ଅମ୍ଭେମାନେ ପରର ଦୋଷ ଲାଗି ବାଡେଇ କଟାଡ଼ି ନ ହୋଇ ନିଜର ଦୋଷ ପ୍ରତି ନଜର ରଖି "ଚିତ୍ତଶୁଦ୍ଧି" କରିବା । ଧର୍ମ ସଂସାରରେ ସାର ଜିନିଷ । ଆମ୍ଭମାନଙ୍କର ନିଜ ନିଜ ଧର୍ମ ଅନୁସାରେ ଚାଲିବା ଦରକାର । ହିନ୍ଦୁ ଠିକ ହିନ୍ଦୁ ହେଉ, ମୁସଲମାନ ଠିକ ମୁସଲମାନ ହେଉ, ଖ୍ରୀଷ୍ଟୀୟାନ ଠିକ ଖ୍ରୀଷ୍ଟୀୟାନ ହେଉ । ଧର୍ମର ବଳହିଁ ବଳ । ସେ ବଳ ଆଗରେ ତରବାରି କି ତୋପର ବଳ କିଛି ନୁହେଁ ।

---

୨ୟ କଥା :—

ଅମ୍ଭମାନଙ୍କର ଗୋଟାଏ କଥାରେ ଭାରି ଭୁଲ ହେଉଅଛି । ଅମ୍ଭମାନଙ୍କର ବଡ଼ବଡ଼କେ କହୁଥିଲେ "କାଟି ପିନ୍ଧିବ, କୁଟି ଖାଇବ "। ଅମ୍ଭେମାନେ ସେ କଥା ଭୁଲି ଯାଇ ଥାଉଁ । ବଦେଶରୁ ଲୁଗା ଅସିଲେ ଅମ୍ଭେମାନେ ପିନ୍ଧୁ ଥାଉଁ । ଏଣିକି ଅମ୍ଭେମାନେ ତାହା ନ କର ଅପଣା ବଳରେ କପା ଚାଷକର ତୂଳା ଅମଦାନି କରିବା ଓ ସେହି ତୁଳାରୁ ଘରେ ଅରଟ ରଖି ସୂତା ତଅର କର ଅମ ଦେଶୀ ତନ୍ତ୍ରଙ୍କ ହାତରେ ଲୁଗା ବୁଣାଇ ପିନ୍ଧିବା । ତାହା ହେଲେ ଅମ୍ଭେମାନେ ୪ ୦ ୨ ମଧରେ ଖଣ୍ଡେ ଲୁଗା ପାଇବା । ଦୁଇ ତନି ଟଙ୍କା ଦେଇ ଖଣ୍ଡେ ବଦେଶି ଲୁଗା କିଣିବାକୁ ପଡିବ ନାହିଁ । ଅମ୍ଭମାନଙ୍କ ଦେଶରେ ଦେଶୀ ଲୁଗା ନଚଳି ବଦେଶୀ ଲୁଗା ଚଳିବାରୁ ବର୍ଷକରେ ଅମ୍ଭମାନଙ୍କ ଦେଶରୁ କୋ ୬୦ ଟୀ ଟଙ୍କା ବଦେଶକୁ ଚାଲି ଯାଉଅଛି ! ବଦେଶୀ ଲୋକେ ଯେତେବେଳେ ଯେପରି ଇଚ୍ଛା କରୁଛନ୍ତି ତେତେବେଳେ ସେହିପରି ଲୁଗାର ଦର ବଢ଼ାଉ ଅଛନ୍ତି । ଅମ୍ଭେମାନେ ଦେଶୀ ସୂତାରେ ଦେଶୀ ଲୁଗାପିନ୍ଧିଲେ ଦର କମ ପଡିବ, ଲୁଗାଟି ବେଶି ଦନ ଯିବ ଓ ବର୍ଷରେ କୋ ୬୦ଟି ଟଙ୍କା ବଦେଶକୁ ନ ଯାଇ ଅମ ଦେଶରେ ରହିବ ଓ ତାହା ଅମ୍ଭ ଦେଶୀ ଲୋକଙ୍କ କାମରେ ଅସିବ ।

---

୩ ୟ କଥା :—

ଅମ୍ଭେମାନେ ବୃଥାରେ ଅପଣା ୨ ଭିତରେ ବାଦ ବିବାଦ ଓ କଳି ତକରାର କର କଚେରୀରେ ମାଲି ମୋକଦ୍ଦମା କର

ଅଳ୍ପ । ସେଥିରେ ଦଉଡ଼ ଯେତକ, ଖର୍ଚ୍ଚ ଯେତକ, ପରକୁ ନେହୁର ସେତକ । ତେବେବ ସତକଥା ଧରା ପଡ଼ୁ ନାହିଁ । ତେଣୁ ସବୁ ସମୟରେ ନ୍ୟାୟ ବଚାର ହୋଇ ପାରୁ ନାହିଁ । ଅକାରଣରେ ଅର୍ଥନାଶ ଓ ମନଃପୀଡା ଘଟୁଛି ଓ କେହ୍ର ୨ ଉଚ୍ଛନ୍ନ ହୋଇ ଯାଉ ଅଛନ୍ତ । ଆମଦେଶରେ ଗୋଟିଏ ପୁରୁଣା କଥା ଅଛି ଯେ " ପାଞ୍ଚ ମୁଖରେ ହର " । ଏଣିକ ଅମ୍ଭେମାନେ ଆପଣା ୨ ଗ୍ରାମରେ ପଞ୍ଚାଏତ ବସାଇ ଅପଣା୨ର ଭାଦ ବବାଦ ଫଏସଲ କରବା । ସେ ଫଏସଲ ଠିକହେବ, ଗାଁରେ ବଚାର ହେଲେ ସତକଥା ଧରା ପଡ଼ିବ, ଅଥଚ ଖରଚ ନିହାତ କମ ହେବ । ସୁତରାଂ କଚେରୀକୁ ଅସି ଚପୁ କୁଟିବାର ଦରକାର ନାହିଁ ।

---

୪ର୍ଥ କଥା :—

କାଠର ଅମ୍ଭେମାନେ ସୁଖରେ ରହିବା ସେହ୍ର ବଷୟ ବଚାର କରିବା ଲଗି ଅମ୍ଭମାନଙ୍କର ଦେଶରେ ଗୋଟିଏ ବଡ଼ ସଭା ଅଛି । ସେ ସଭାରେ ଆମଦେଶର ସବୁ ଅଞ୍ଚଳର ଲୋକ ଯୋଗ ଦଅନ୍ତି । ସେ ସଭାକୁ କଂଗ୍ରେସ ଅର୍ଥାତ ଭାରତୀୟ ଜାତୀୟ ମହାସଭା କହନ୍ତି । ଅମ୍ଭେମାନେ ପ୍ରତ୍ୟେକ ମାସକୁ ଚାରି ପାହୁଲା ହିସାବେ ବର୍ଷରେ ବାରଅଣା ଚାନ୍ଦା ଦେଇ ସେହ୍ର ସଭାରେ ମେମ୍ବର ( ସଭ୍ୟ ) ହେବା । ସେ ପଇସା ଅମଦେଶ କାମରେ ଲାଗିବ ଓ ତଦ୍ୱାରା ଅମର ଉନ୍ନତି ସକାଶ ଚେଷ୍ଟା କରାଯିବ ।

---

୫ମ କଥା :—

ଅମ୍ଭମାନଙ୍କ ଦେଶରେ ଅନେକ ଲୋକ ନିଶା ଖାଇ ଜମି ବାଡି ଧନ ଦୌଲତ ସବୁ ବଙ୍କ ଭାଙ୍ଗି ଉଚ୍ଛନ୍ନ ହେଉ ଅଛନ୍ତି । ସେଥିରେ ଅବକାରୀ ଇଲାକାର କୋଟି ୨ ଟଙ୍କା ଆୟ ହେଉ ଅଛି । ଅମ୍ଭେମାନେ ନିଶାବାଜ ନ ହେଲେ ଆମର ପଇସା ଆମ ଘରେ ରହିବ । ନିଶା ଖାଇବା ଦ୍ୱାରା ଆମର ଶାରୀରିକ ଯେ ବଳହାନୀ ହେଉଅଛି ତାହା ହେବନାହିଁ । ଅମ୍ଭମାନଙ୍କ ଧର୍ମରେ ନିଶା ଖାଇବାକୁ ମନା । ନିଶା ଛାଡିଲେ ଅମ୍ଭମାନଙ୍କର ଧର୍ମର ରକ୍ଷା ହେବ । ନିଶା ଦ୍ରବ୍ୟ ମନୁଷ୍ୟର ପରମ ଶତ୍ରୁ, ତା ହାତରେ ପଡିଲେ ମନୁଷ୍ୟ ଚାରା ରହେନାହିଁ । ନିଶା ଭୋଳରେ କେତେ ଲୋକ କେତେ ଯେ ପାପ କରୁଛନ୍ତି ତାହାର ସୀମାନାହିଁ । ଅତଏବ ନିଶା ଜିନିସକୁ ବିଷ ମନେକରି ତାହା କଦାପି ସେବନ କରିବା ନାହିଁ ।

---

୬ଷ୍ଠ କଥା :—

ଆମ ଦେଶରେ ତିରିଶ କୋଟିରୁ ଉର୍ଦ୍ଧ ଲୋକ । କିନ୍ତୁ ସମସ୍ତଙ୍କର ଧର୍ମ ଏକା ନୁହେଁ । ଅମ୍ଭମାନଙ୍କ ମଧ୍ୟରୁ କିଏ ହିନ୍ଦୁ, କିଏ ମୁସଲମାନ, କିଏ ଖ୍ରୀଷ୍ଟିୟାନ, କିଏ ବୌଦ୍ଧ, କିଏ ଜୈନ, କିଏ ବା ଅଗ୍ନି ଉପାସକ । କିନ୍ତୁ ଅମ୍ଭମାନଙ୍କର ଧର୍ମ ଫରକ ଥିବାରୁ ମନ ଫରକ ହେବାର ଉଚିତ ନୁହେଁ । ଧର୍ମ ପୃଥକ ହେଲେ ହେଁ ଅମ୍ଭେମାନେ ଏକା ଭାରତ ମାତାଙ୍କ ସନ୍ତାନ । ସେହି ଦେଶର ଉନ୍ନତିରେ ଆମର ସମସ୍ତଙ୍କର ଉନ୍ନତି । ସେହି ଦେଶର ଅନ୍ନ ଜଳରେ ଅମ୍ଭେମାନେ

ସମସ୍ତେ ବଞ୍ଚିଥାଉ । ଅମ୍ଭେମାନେ ସମସ୍ତେ ଏକା ଡଙ୍ଗାରେ ବସିଛୁଁ । ଡଙ୍ଗାଟି ବୁଡ଼ିଲେ ସମସ୍ତେ ବୁଡ଼ିବା । ଅମ୍ଭମାନଙ୍କର ଧର୍ମ ନେଇ ମତାନ୍ତର ଘଟିବା ଉଚିତ ନୁହେଁ । ଅମ୍ଭେମାନେ ଏକ ମନ ଏକ ପ୍ରାଣ ହୋଇ ମାତୃଭୂମିର ସେବା କରିବା । ତାହା ହେଲେ ଅମ୍ଭମାନଙ୍କର ଦୁଃଖ ନିଶ୍ଚୟ ଦୂର ହେବ ।

୭ମ କଥା :—

ଅମ୍ଭେମାନେ କୃଷି ଜୀବୀ । ଚାଷ କରି ଫସଲ ଆବାଦ କରି ପେଟ ପୋଷୁ । ଧାନ, ଗହମ, ରବି ଓ ନାନା ପ୍ରକାର ଶାକ ସବଜି ଅମ୍ଭମାନଙ୍କର ପ୍ରଧାନ ଖାଦ୍ୟ । ପୃଥିବୀର ଅନ୍ୟାନ୍ୟ ଜାତିପରି ଅମ୍ଭମାନଙ୍କର ମାଂସ ପ୍ରଧାନ ଖାଦ୍ୟ ନୁହେଁ । ଅମ୍ଭମାନଙ୍କର ଖାଦ୍ୟ ସକାଶ ଅମ୍ଭେମାନେ ଗୋ ଜାତି ଉପରେ ବିଶେଷ ନିର୍ଭର କରୁ । ଅମ୍ଭେମାନେ ମାତୃ ସ୍ତନ ଛାଡ଼ିଲେ ଗାଈ ଦୁଧ ଖାଇ ବଞ୍ଚୁ । ଦୁଧରୁ ଲହୁଣୀ, ଘିଅ, ଦହି ଓ ଛେନା ପ୍ରଭୃତି ନାନାଦି ଉପାଦେୟ ଖାଦ୍ୟ ତିଆରି ହୁଏ । ଗୋରୁ ଅମ୍ଭମାନଙ୍କ ସକାଶେ ହଳକରେ ଓ ଗାଡ଼ି ଟାଣେ । ଗୋରୁ ଗୋବରରୁ ଭଲ ଖତ ହୁଏ । ଗୋରୁ ନ ଥିଲେ ଅମ୍ଭମାନଙ୍କର ବିଶେଷ କଷ୍ଟ ହୁଅନ୍ତା । ଗୋଜାତିର ନାଶ ଘଟିଲେ ଅମ୍ଭମାନଙ୍କର ନାଶ ଘଟିବ । ଗୋରୁ ଅମ୍ଭମାନଙ୍କର ଖାଦ୍ୟ ନୁହେଁ । ଗୋରୁ ସାହାଯ୍ୟରେ ଅମ୍ଭେମାନେ ଫସଲ ଅମଦାନି କରି ସେହି ଫସଲରୁ ଖାଦ୍ୟ ସାମଗ୍ରୀ ତିଆରି କରୁ । ଅତଏବ ଆମଦେଶରେ କି ହିନ୍ଦୁ କି ମୁସଲମାନ, କି ଖ୍ରୀଷ୍ଟିୟାନ କାହାରି ଗୋବଧ କରିବାର କିମ୍ବା ତହିଁରେ ପ୍ରଶ୍ରୟ ଦେବାର ଉଚିତ ନୁହେ ।

୮ମ କଥା :—

ଅସ୍ମ ଦେଶରେ ଗୋଟିଏ ପୁରୁଣା କଥାଅଛି ଯେ ଯେଉଁ ବିଦ୍ୟା ଯେଉଁଥିକୁ ଶୋଭାପାଏ । ଭାରତବାସୀର ଇଂରାଜୀ ବିଦ୍ୟା ବିଦ୍ୟା ନୁହେଁ । ଅମ୍ଭେମାନେ ଘରପାଠ ଛାଡ଼ି ପରପାଠ ପଢ଼ିଲେ କେବେହେଁ ଉନ୍ନତ କରି ପାରିବୁଁ ନାହିଁ । ଆଜିକାଲି ଅସ୍ମମାନଙ୍କୁ ବିଦ୍ୟାଳୟରେ ଯେଉଁ ପାଠଶିକ୍ଷା ଦିଆ ଯାଉଅଛି ସେ ପାଠ ପଢ଼ିଲେ ଅମ୍ଭେ ଗୋଟିଏ୨ ଚାକରିଆ ହେବୁଁ । ତାହା ଛଡା ଆଉ ସବୁ କାର୍ଯ୍ୟପାଇଁ ଅକର୍ମଣ୍ୟ । ସେଥିରେ ଧର୍ମ ଶିକ୍ଷ୍ୟା ବା ଜାତୀୟ ବ୍ୟବସାୟ କ କୃଷି ଶିକ୍ଷା ନାହିଁ । ଅବଶ୍ୟ ଅମ୍ଭେମାନେ ଇଂରାଜି ଭାଷା ଶିଖି ପାରୁ । କିନ୍ତୁ ସେଥିଲାଗି ଧର୍ମ ଛାଡି କୁଳବ୍ୟବସାୟ ଛାଡି ଦରବୁଡ଼ା ହେବାଯାଏ କଷ୍ଟର୨ ହେବା ଉଚିତ ନୁହେଁ ।

---

୯ମ କଥା :—

ଅମ୍ଭେମାନେ ଭାରତ ବର୍ଷରେ ଜନ୍ମହୋଇ ଅଛୁ । ସେ ଦେଶ ଅସ୍ମମାନଙ୍କର ମାତୃଭୂମି । "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । ଅର୍ଥାତ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ବଡ ଅମ୍ଭେ ମାନେ ଜନ୍ମଭୂମିର ସେବାକଲେ ସ୍ୱର୍ଗପ୍ରାପ୍ତି ଅପେକ୍ଷା ବେଶିଫଳ ପାଇବା । ବର୍ତ୍ତମାନ ଅସ୍ମଦେଶର ଅବସ୍ଥା ଭାରି ମନ୍ଦ ହୋଇଅଛି ସ୍ୱେଚ୍ଛାଚାରୀ ରାଜକର୍ମଚାରୀମାନେ ନାନାଦି ଅତ୍ୟାଚାର କରୁ ଅଛନ୍ତି । ଗଲା ସନ୧୯୧୯ ମସୀହାରେ ଦୁଇଜଣ ରାଜକର୍ମଚାରୀ ଙ୍କ ଯୋଗୁଁ ପଞ୍ଜାବରେ ଅସଂଖ୍ୟ୨ ନୀରିହଲୋକ ନାଶ ଗଲେ,

କୁଳବଧୂମାନଙ୍କର ଇଜତଗଲ । ନିର୍ଦ୍ଦୋଷୀ ପିଲମାନେ ଯେ ସଜା ଭୋଗ କଲେ ତାହାକଥାରେ କହୁହେବ ନାହିଁ । ବ୍ରିଟୀଶ ରାଜ ମନ୍ତ୍ରୀ ତାଙ୍କ କଥା ଅନୁସାରେ କାର୍ଯ୍ୟ ନ କରିବାରୁ ଅମ୍ଭ ଦେଶରେ ମୁଷଲମାନ ଭାଇମାନଙ୍କ ଧର୍ମ ପ୍ରାଣରେ ବଡ ଅଘାତ ଲଗିଛି । ବର୍ତ୍ତମାନ "ଜଜିରତ୍ ଉଲ୍" ଆରବ ତୁରସ୍କ ବାଦ୍‌ସାଙ୍କ ଅଧୀନରେ ନାହିଁ । ଏହା ମୁଷଲମାନ ଧର୍ମ ବରୁଦ୍ଧ । ବର୍ତ୍ତମାନ ଚାରି ଅଡେ଼ ଦୁଃଖ ଓ ଅଶାନ୍ତି । ଅମ୍ଭେମାନେ ସ୍ୱରାଜ୍ୟ ପ୍ରାପ୍ତି ନକଲେ ଏ ଦୁଃଖ, ଏ ଅଶାନ୍ତି ଦୂର ହେବନାହିଁ । ସୁତରାଂ ଅମ୍ଭେମାନେ ନ୍ୟାଯ୍ୟ ନିର୍ମଳ ଧର୍ମପଥରେ ଚାଲିଲେ ସ୍ୱଦେଶ ସେବାରେ ଧନ, ମନ, ପ୍ରାଣ ସବୁ ଢାଳିଦେଲେ, ପ୍ରତ୍ୟେକ କିଛି୨ ସ୍ୱାର୍ଥତ୍ୟାଗ କଲେ, ନିଶ୍ଚୟ ଅମ୍ଭେମାନେ ଏ ବର୍ଷ ନ ପାହୁଣୁ ସ୍ୱରାଜ୍ୟ ପାଇବା । ତାହାହେଲେ ଅମ୍ଭର ପୂର୍ବ କଥା ପୂର୍ବ ସୁଖ, ଫେରି ଆସିବ, ଧର୍ମ ସଂସ୍ଥାପନ ହେବ । ପାପ ପଲକମାନେ ଭାରତଭୂମିରୁ ଉଭେଇ ଯିବ । ଶାନ୍ତି ବିରାଜ ମାନ କରିବ ।



Printed by B. D. Naik. at the Dutta Press, Cuttack.